ବି, ଏ, ନମିଦଙ୍କ ରଚିତ ।

# ପ୍ରହ୍ଲାଦ ଚରିତ୍ର ସୁଆଙ୍ଗ ।

ଗୀତାଭିନୟ ।

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା

ପ୍ରଥମଥର ପ୍ରକାଶିତ ।



☛ ଦାଶରଥି ପୁସ୍ତକାଳୟ ☚

ବାଲୁବଜାର କଟକ,

ପୋଃ ଅଃ [illegible] ।

Printed by S. Aminul I.
at Orissa Kohinoor Press
Choudhury Bazar
Cuttack.
1929

ମୂଲ୍ୟ ୵୦ ୵ ଦୁଇଅଣା ମାତ୍ର ।

# ପ୍ରହ୍ଲାଦ ଚରିତ

## ଗୀତାଭିନୟ ।





### ବନ୍ଦନା ।

{ ମାଗ ମନଇଚ୍ଛା ବର—ବୃତ୍ତରେ }

ଜୟ ଜୟ ସରସ୍ୱତୀ, ଜୟ ବ୍ରହ୍ମ-ନନ୍ଦିନୀ ।
ଦେବ ଅନୁଗ୍ରହ ଦାତ୍ରୀ ମାଗୋ ତ୍ରୈଲୋକ୍ୟ ବନ୍ଦିନୀ । ପଦ ।
ଧରା-ପଙ୍କେ ତୋ ସନ୍ତାନ; ପଡ଼ି ହେଉଅଛି ଲୀନ ।
ଉଦ୍ଧର ଧର ପରାଣ, ଆସଗୋ ମାତଃ ବୀଣାପାଣି । ୧ ।
ମୂଢ଼ମତି କାଳିଦାସ, ତୋ ଚରଣେ କରି ଆଶ ।
ଲଭିଲେ ଅପାର ଯଶ ମାଗୋ କୃପା-କଲ୍ଲୋଳିନୀ । ୨ ।
ତାରେ ଶୁଣ ମୋ ବିନତି, ମୁଁ ଯେବେ ତୋର ସନ୍ତତି ।
ନବଭାବ ହେଉ ଭିତ୍ତି ମୋ ପ୍ରାଣେ ଏହି ଦୟିନୀ । ୩ ।
ବସି ମୋର ହୃଦାସନେ, କହିଦଅ ମା ସ୍ୱପନେ ।
ମାଗୁଣି ତୋ ଶ୍ରୀଚରଣେ ଅଜ୍ଞାନ ହରିଦ ଭଣି । ୪ ।



❋ ରାଜାର ମନ୍ତ୍ରିସହ ପ୍ରବେଶ ଗୀତ । ❋

{ ରଥ ଭଗ ପଥେ ଦେଖୁଁ — ବୃତ୍ତେ }

କହ ମନ୍ତ୍ରୀ କମ୍ପା ମୋର ମନ ହୁଏ ଛନ୍ନ ଛନ୍ନ । ଥରୁଛି ହୃଦୟ ବୈରୀ କଲା ପ୍ରାୟେ ପରଧନ । ପଦ । ବେନ ନୟନରୁ ନୀର, ବହୁଅଛି ଧାର ଧର । ଉଠଇ ଶୋକର ଜୁଆର ଶରୀର ଦହେ ଥରସ୍ତ । ୧ । ଶ୍ୱାସ ପବନ ପ୍ରଖର, ଉଠୁଅଛି ବାରମ୍ବାର । ଯେଣିକି ଚାହିଁଲେ ତେଣେ ଦିଶୁଅଛି ମୋତେ ଶୂନ୍ୟ । ୨ । ଦିବସେ ଶୃଗାଳ ବୃନ୍ଦ, ଡାକନ୍ତି ହୋଇ ଆନନ୍ଦ । ଜଣା ଯାଉଅଛି ଜୀବ ଯିବ କି ଯମସଦନ । ୩ । କେ ମୋ ଭାଇ ସମାଚାର, ଆସି କହିବ ସତ୍ୱର । ହମିଦ ବୋଲଇ ତେବେ ଆନନ୍ଦ ହୋଇବ ମନ । ୪ ।



ରାଜା—କହ ମନ୍ତ୍ରୀ !

କାହିଁକି ହୃଦୟ ମୋର ହୁଏ କମ୍ପମାନ ? ବାମଚକ୍ଷୁ ବାମ-ବାହୁ ଥରେ ଥରହର । ଗତ ନିଶାର୍ଦ୍ଧେ ଯାହା ଦେଖିଛି ବିପରୀତସ୍ୱପ୍ନ । ତଦାରୁ ହେଉଛି ହୃଦ ମୋର ତେତେବେଳୁଁ । ସତେ କି ଭ୍ରାତା ମୋର ଆସିବ ମୋ ପାଶେ, ଦେଖିବ ତାହାକୁ ବାରେ ନୟନ ପୂରାଇ ? ଭାଇ ମୋର ତ୍ରିପୁର ବିଜୟୀ । ଡରନ୍ତି ତାହାକୁ ଦେଖି ସୁରାସୁର ନର । ତାକୁ ମାରିବାକୁ ଏଡ଼େ କାର ଶକ୍ତି ?

ମନ୍ତ୍ରୀ—ଧୈର୍ଯ୍ୟ ଧରନ୍ତୁ ମଣିମା !

ଅଧୈର୍ଯ୍ୟ ହୋଇଲେ କ୍ଷୟ ହୁଏ ବୁଦ୍ଧିବଳ । ବିପଦ ସମୟେ ଦମ୍ଭ ବାନ୍ଧଇ ଯେ ଜନ, ଜୟଲାଭ କରେ ସେହି ସକଳ କାର୍ଯ୍ୟରେ । ଏହି ଦେଖ ଆସୁଅଛି ଦୂତ । ଜଣାଯିବ ତା ମୁଖରୁ ସମସ୍ତ ବୃତ୍ତାନ୍ତ ।

* ଦୂତର ପ୍ରବେଶ ଗୀତ * ୧

{ କାହିଁକି ଡକର ହେଲ — ବୃତେଉ }

( ଅମ ) ଓଡ଼ିଶାକୁ ସାଧି ଦେଲ ନଇବଡ଼ି ।

( ଭାଇ ) ବୁଡ଼ିଗଲା ଜଳେ ସବୁ ବାଲି ବାଡ଼ି । ପଦ ।

ଯେତେ ଦେଖ କରୁ ନାହିଁ, ଖାଲି ପଡ଼ୁଅଛୁ ଭୂଇଁ । ଦେଖି ଋଷିଙ୍କର ଯାଏ ହସା ହୁଡ଼ି । ୧ । କହୁଥିଲେ କେତେ ଟେକ ଭଲ ହୋଇବ ପାଳକ । କାଳ ଅଗ୍ନି ଦେଉଅଛୁ ପଡ଼ି ପଡ଼ି । ୨ । ପାଳକୁ ପାଳ ଏ ଭଳି, ହେଉଅଛୁ ନଇବଡ଼ି । ସରକାରଙ୍କ କାହିଁକି କର ଯୋଡ଼ି । ୩ । ହଟିଦ କପାଳ ଫେଟେ, ଅଉ କ କରୁଛ ନାଟ । ତାରବେ ଏ ସଙ୍କଟରୁ ବନମାଳୀ । ୪ ।



ରଜା — ଦୂତ !

କହ ଶୀଘ୍ରେ ମୋ ଭାଇ ଖବର ?

ଦୂତ — ଜହବେ ଆସୁଅଛନ୍ତି ବ୍ରହ୍ମାଙ୍କ କୁମର ।

( ନାରଦ ରଜା ପାଶେ ପ୍ରବେଶ )

ହିରଣ୍ୟ—ଦେବର୍ଷି ! ନମଇଁ ତବ ଶ୍ରୀଚରଣ—ପଙ୍କଜେ, ସୁଭାଗ୍ୟ ମୋହରଯାକ । କରିଲି ଦର୍ଶନ, ସାର୍ଥକ ହୋଇଲାମୋର ଚକ୍ଷୁ-ବେନ । କି ସନ୍ଦେଶେ ଆଗମନ ଅଧମ ସଦନେ ? ଫେଡ଼ି କହନ୍ତୁ ମୋତେ ହେ ବିଧିନନ୍ଦନ !

ନାରଦ—ବାବୁ ରେ ହିରଣ୍ୟ !

କି କହିବ ତୋତେ ଦୁଃଖର କାହାଣୀ । କହିଲାବେଳକୁ କ୍ରୋଧ ଉଠେ ବାରମ୍ବାର । ଦେଖି ତୋର ଭାଇର ମରଣ ହୋଇଲାଣି ମଣିହରା ଫଣିପ୍ରାୟେ ମୁହିଁ । ହିରଣାକ୍ଷ ଭ୍ରାତା ତୋର ପଶିଣ ପାତାଳେ, ଯୁଦ୍ଧ ଆରମ୍ଭିଲା ବିଷ୍ଣୁରୂଳେ ।

ଅନେକ ଦଣ୍ଡଘାଏ କରିଲା ସମରେ, ଦେଖି ଭୟରେ କମ୍ପିଲେ ସକଳ ଅମରେ । ବରାହ ରୂପରେ ହରି ଧରି ବିବିଧ ଅସ୍ତ୍ର ଛଳରେ ଚଢ଼ିବାଦାରିଲେ ତୋ ଭାଇର ଅନ୍ତ୍ର । ସୈନ୍ୟ ମାନେ ଦେଖି ଏହା, ପଳାଇଗଲେ ନିଜ ଜୀବନ ନେଇ । ଏହା ଦେଖି ନ ସହିଲା ଦେହ ମୋର, କହିବାକୁ ଆସିଥିଲି ତୋହର ନିକଟେ । ଉପାୟ ଥିଲେ ଏହାର କର ପ୍ରତିକାର ।

✲ ହିରଣ୍ୟ ରାଜାର ଶୋକ । ✲

{ ଦୟାନିଧି ଦୟାପଦ — ବୃତ୍ତେ }

ଅହା ହିରଣାକ୍ଷ ଭାଇ କେଣେ ଛାଡ଼ି ଗଲୁ । ବିପଦ ନଦୀରେ ଭାଇ ମୋତେ ଭସାଇଲୁ । ବାଟରେ ନ ଦେଖିଲି ତୋତେ । ହେଲା ଯୁଦ୍ଧ କରି ପ୍ରାଣ ଦେଲୁ ବିଷ୍ଣୁ ହସ୍ତେ । ୧ । ଆଜଠାରୁ ଛୁଡ଼ିଗଲା ମୋ ଦକ୍ଷିଣବାହା । ସାହା କେହି ନାହିଁ ନ ଦିଶଇ ମୋତେ ରାହା । ଚଉଦିଗ ଦିଶେ ଶୂନ୍ୟ । ଏକା ଛାଡ଼ି ମୋତେ ଗଲୁ ଶମନ ସଦନ । ୨ । ମହା ମହା ଯୋଦ୍ଧା ନେଇ ଯାଇଥିଲୁ ଯୁଦ୍ଧ । ବିପଦ-ବେଳକୁ ସାହା ନୋହିଲେକି କେହି । କେଣେ ପ୍ରାଣ ଗଲା ତୋର । ଅକାଳ ବଜ୍ର ପଡ଼ିଲା ଶୁଣି ଏ ଖବର । ୩ । ଅନ୍ତଃପୁରେ ରାଣୀମାନେ ଯେବେ ଏହା ଶୁଣିବେ । ଏକେ ଏକେ ଯାଇଁ ସର୍ବେ ଜଳରେ ବୁଡ଼ିବେ । ଫାଟି ଯାଉଅଛି ହିୟା । ହରିଙ୍କୁ କି ବିପଦ ଦେଲ ଚଉବାହା । ୪ ।



ହିରଣ୍ୟକଶିପୁ—ରେ ଅଧମ କମଳାରମଣ !

ମାଗିଲୁ ଭ୍ରାତାକୁ ମୋର କଲା ଅପରାଧେ ? ଜାଣିଥାଅ କହୁଛି ଅଧି କରି କିବାର ସତ୍ୟ, ତୋତେ ମାରି ତୋ ରକ୍ତେ କରିବ ଭାଇ ଶ୍ରାଦ୍ଧ, ତେବେ ଯାଇଁ ମେଣ୍ଟିବ ମୋର ମନ-ସାଧ । ଶୁଣ ମନ୍ତ୍ରୀ ! ଅନ୍ତଃପୁରେ ଜଣାଇବା ଭାଇର ମରଣ ।

( ପ୍ରସ୍ଥାନ )

* ଅନ୍ତଃପୁରେ ରାଣୀର ଗୀତ । *

{ ମାତ ଦୟା ବଳରୁ ତୋହର — ବୃତ୍ତେ }

କହିଁ ଦଶୁଛ ବିରସ ମନ । ସତ କର କହ ପ୍ରାଣଧନ ।ପଦ। ଅମୂଲ୍ୟ ରତ୍ନ ହକଲ ପ୍ରାୟେ, ଦଶୁଅଛ ତେଜେ ତୁମ୍ଭ କାୟେ ; ବେନି ନୟନରୁ ବହେ ଜଳ । ୧ । ପ୍ରାଣନାଥ ତୁମ୍ଭର ଏ ଗତି ଦେଖି ହସିବେ ସବୁ ନୃପତି । ସ୍ୱବୁ ବନ୍ଧୁ ନେବେ ସବୁ ଧନ । ୨ । ଦେଖି ଅସ୍ଥିର ହୁଏ ମୋ ମନ, ଝଟ କହ ତୁମ୍ଭଙ୍କୁ ମୋ ରାଣ । ଗୀତେ କହେ ହରିଦ ଅଜ୍ଞାନ । ୩ ।



* ରାଣୀପ୍ରତି ହିରଣ୍ୟର ଗୀତ । *

{ କାହା ଭାବେ ମନ୍ତ୍ରି — ବୃତ୍ତେ }

ଉପବାସ କସ ଆଜ୍ ଜଣାଇବ ତୋତେ । କ କହିବ ନିଜଦର୍ଗ ଶୂନ୍ୟ ଦିଶେ ମୋତେ । ପଦ । ସୁବର୍ଣ୍ଣ ମୁକୁଟ ପଡ଼ିଅଛୁ ଖସି, ରାହୁ ଗ୍ରାସି ଅଛୁ ପୂର୍ଣ୍ଣିମାର ଶଶୀ । ଶଶୀହାସୀ ଆଶା ଭସିଗଲା ନଦୀସ୍ରୋତେ ॥ କ କହିବ ତୋତେ କମଳବଦନୀ । କହିଲେ କଲିଜା ହୁଦ ହୁଏ ହାଣି । ଭ୍ରାତାହତ ହେଲେ ଅକ ସେ ଦୈତ୍ୟାର ହସ୍ତେ । ୨ । ବଶିଷ୍ଠ ମନ୍ତ୍ରରେ ଧର ଶିଶୁପଣ, ଶୋଷିଲା ପବଣ ଚଢ଼ି ତାର ଗାତ । ହରିଦ କୋଲେ ଜାଉଦ କହିଗଲେ ମୋତେ । ୩ ।



ରାଣୀ — ହା ପ୍ରାଣନାଥ !

କେଣେ ଗଲ ଏକା ଛାଡ଼ିଦେଇ ?
ଅକାଳ କୁହୁଡ଼ ମାଡ଼ ଆସିଲା ସଂସାରେ,
ଚଉଦିଗ ଦିଶଇ ଅନ୍ଧାର ।

ମନା କରୁଥିଲି ଧନ ନ ଯାଅ ସମରେ,
ନ ମାନ ମୋ ବୋଲ ଚେତିକରି ପରା ।
କରି ନ ପାରିଲି ଆଉ ଶ୍ରୀମୁଖ ଦର୍ଶନ ।
ରେ କମଳାବଳ'ସ ବସ୍ତୁ !
ଜାଣିଲି କାନ୍ତଙ୍କୁ ମୋର ବିନା ଅପରାଧେ !
ଲଭିବୁ ରେ ଖଳ ନଷ୍ଟେ ଦିନେ ଏହିପରି ଦଶା ।

ରାଜା – ଶୁଣ ମନ୍ତ୍ରୀ !

ଯାଉଛି ହିମାଳୟ ପର୍ବତେ ମୁହିଁ ତପ ଅର୍ଥେ
ତପେ ତୋଷି ହଂସାରୂଢ଼େ ମାଗିବି ମୁଁ ବର
ବ୍ରହ୍ମାବରେ ହୋଇଣ ବିଜୟି,
ଅବସ୍ତୁ କରିବି ନଷ୍ଟେ ସସାଗରା ଧରା ।
ହୋଇଣ ଅମର ଆଳୟ,
ରାକ୍ଷସ ଭୁବନ ତହିଁ ବାସ କରିବି ସୁଖେ ।

( ସମସ୍ତଙ୍କର ପ୍ରସ୍ଥାନ )

※ ରାଜା ହିମାଳୟ ପ୍ରାନ୍ତେ ପ୍ରବେଶ ଓ ସ୍ତବ । ※

{ ଗୋପୀଭାଷା ବୃତ୍ତେ }

ଜୟ ହଂସାରୂଢ ମୁଁ ମୂଢ଼ ଜନ । ତୁମ୍ଭ ଚରଣରେ କରୁଛି ଜଣାଣ ।
ଦୀନଜନଙ୍କୁ ବାରେ ଦୟାକର । ସୃଷ୍ଟିକର୍ତ୍ତା ଅଟ ଜଗତର ।
ନାମ ପଡ଼ିଛି ତୁମ୍ଭ ଜଗତରେ । ତାର ତାର ପ୍ରଭୁ ଏ ଅନାଥରେ ।।
ଆସି ଅଛି ମୁଁ କରଣ ଭରସା । ଫେଡ଼ିବ ବୋଲି ମୋହର ଦୁର୍ଦ୍ଦଶା ।।
ଦୟା ବହି ଦାସେ ହୁଅ ପ୍ରସନ୍ନ । ଏ ରହସ କହେ ହରିଦ ଅଜ୍ଞାନ ।।



※ ଇନ୍ଦ୍ର ଓ ବୃହସ୍ପତ୍ୟାଚାର୍ଯ୍ୟଙ୍କର ପ୍ରବେଶ । ※

{ ଶୁଣ ଲୋ ସୁନାଭ ଏ ତୋର ଅଜାଣ – ବୃତ୍ତେ }

ଚନ୍ଦ୍ରମାବଦନୀ ଧନୀ କାନ୍ଦିଲେ କି ସରେ ଇନ୍ଦ୍ର ଛାଡ଼ିଦେବ
ତୋତେ । ମନ୍ଦଭାଗ୍ୟଣୀ ତୋ ଉଦର ଚରିବ କେ ବଧି

କରିବ ତୋତେ । ଭଲେ ପଢ଼ୁଛୁ ଚେଷ୍ଟ । ଏବେ ଧୀକର ତୋର
ଇଷ୍ଟ ।୧। ତେହ୍ନ ଗର୍ଭ ସୁତ ହେଲୁ ନାହେଁ ଜାତ ମୋ
ଇନ୍ଦ୍ର ପଦକୁ ନେବ । ଅଜ ଗର୍ଭ ଚିର ଫକାଇଲେ ମାଂସ ମୁନ୍ଦୁ ଦକ
ଛୁଟିଯିବ । ଛାଡ଼ ଦେବଲୁ ଏ ଦାନ୍ତ । ଲେଉଡ଼ିଲେ ତ ନ ମିଳବ ଯନ୍ତ୍ର ।୨।
ଜୀବନର ଆଶା ତେଜ ରଧାଳଧାରୀ ନ କରିବ ତୋତେ ।
ନୟନେ ନ ଦେଖି ତୋର ଜୀବଧନ ଅକୁଟିଳ ଶୋକବୁ ହେଉଛେ ।
ଗୀତେ କହେ ହମିଦ. । ବନ୍ଧୁ ଦେଲୁ ମୋତେ କ ବିପଦ । ୩ ।



❋ ଇନ୍ଦ୍ର ପ୍ରତି ବଦୁଂକ୍ଷ୍ୱାଯ୍ୟାର ଗୀତ । ❋

{ ବ୍ରଜରଜ ସୁତ – ବୃତ୍ତେ }

ହେଇ ଉଚ ଜାତି ଅଟେ ଶଚୀପତି ବୈରବୃତ୍ତି କରୁ କାହିଁକି
ରେ । ଇନ୍ଦ୍ର । ପର ନାରୀ ମାଂର ଲଭିବୁ କି ଶିଖି ଦୟା ଧର୍ମ ତୋର
ନାହିଁ କି ରେ । ଇନ୍ଦ୍ର । ପଦ । କାଳକୁ ନ ଗଣୁ ତୋ ଖଣ୍ଡପଣ,
ଅତୁଣ୍ଠ ଧରିଅଛୁ ମୋର ବଚନ । ହତ ହେବୁ ଜାଣ ଅଧର୍ମ କହିଲେ
ତୋତେ ବୁଝାଉଛି ମୂର୍ଖ କିରେ । ଇନ୍ଦ୍ର ।୧। ଗୌତମ ନାରୀକୁ
ହରିଲୁ ବଳେ, ଗୁରୁ ପତ୍ନୀ ବୋଲି ନ ଭାବିଲୁ ଛଳେ । ସମ୍ମୋହ
ହେଲୁ ସେହୁ ଦିନୁ ମୁଖେ ଲାଜ ତୋର ମାତ୍ରୁ ନାହିଁ କିରେ । ଇନ୍ଦ୍ର ।
କର ଧରି କରୁଛି ନିବେଦନ, ଅକାରଣେ ନ ନାଶ ମୋ ଜୀବନ ।
ଏ ରୂପେ କହଇ ବାଳକ ହମିଦ କମଳାପତିଙ୍କି ଧ୍ୟାଇ କରେ ।
ଇନ୍ଦ୍ର ।୩।



❋ ନାରଦ ପ୍ରବେଶ ଓ ଗୀତ । ❋

{ ପୀରତି କେତେନ୍ତ ପଣ୍ଡି – ବୃତ୍ତେ }

କହ କହ ବଜ୍ରଧାରୀ ଏ କାହା ନାରୀ । କଳେ ନେଉ ଅଛୁ
ଧରି । ପଦ । ଗର୍ଭ ବାସ ହେଲୁ ପ୍ରାୟେ, ଦିଶୁଅଛି ତାର କାୟେ ।

ତେଜି ନୟନକୁ ତାଉ ବନ୍ଦୁଛ ତାର ।୧। କି ଦୋଷ କଲା ତୋହର ଦଣ୍ଡୁ ଅଛୁ ଶରୀରର । ଜଣାଯାଏ ଏହ କେଉଁ ରାଜକୁମାର । ୨ । କହେ ବାଳକ ହମିବ, ନ ଦଅ ତାକୁ କଷ୍ଟଦ । ବୁଝାଇ କହୁଛ ତୋତେ ରେ ବଜ୍ରଧାର ।୩ ।



## ଇନ୍ଦ୍ର ଓ ନାରଦଙ୍କର କଥୋପକଥନ ।

ନାରଦ — କହ ଇନ୍ଦ୍ର ! କେଉଁ ଦୋଷେ ହରୁ ପରନାରୀ ?
ଇନ୍ଦ୍ର — ଶୁଣ ଋଷି ! ଅଟେ ଏ ହିରଣ୍ୟ ମନୋହାରୀ ॥
ନାରଦ — ସ୍ୱାମୀଦୋଷେ କାହିଁ ତାକୁ କରୁ ହରବର ?
ଇନ୍ଦ୍ର — ଗର୍ଭ ତାର ପ୍ରାଣ ନେବ ନଷ୍ଟେ ମୁଁ ଏହାର ॥
ନାରଦ — ଅବଳା ଅଟେ ଏ ତାହା ନୁହେଁ ତୋ ଉଚିତ ।
ଇନ୍ଦ୍ର — ଏହା ସୁତ ହେଲେ ଜାତ ସାଧିବ ମୋ ଶତ୍ରୁ ॥
ନାରଦ — ମହାପାପ ଅଟେ ଯେ ଗର୍ଭିଣୀ ସ୍ତ୍ରୀ ବଧ ।
ଇନ୍ଦ୍ର — ହେଲେ ହେଉ ମାରିବି ମୁଁ ନ ଭଜି ଉପ୍ରୋଧ ।
ନାରଦ — ମୋର ବୋଲକର ଇନ୍ଦ୍ର କହୁଅଛୁ ତୋତେ ।
ଇନ୍ଦ୍ର — ଯାହା କହିବାର କହତଅ ଶୀଘ୍ରେ ମୋତେ ।
ନାରଦ — ଜନ୍ମିଲେ ନାଶିବୁ ପଛେ ନେଇ ଏହି ସୁତ ।
ଇନ୍ଦ୍ର — ହେଉ ତବ ବାକ୍ୟେ ଛାଡ଼ିଦେଲି ବଧଚିତ୍ତ ॥
ନାରଦ — ମୁଁ ଉଚ୍ଚ ସମସ୍ତ କହ ଭଲ ମନ୍ଦ କଥା ।
ଇନ୍ଦ୍ର — ମୁଁ ତ ଦେଇଥିଲେ ପଛେ ନ ଥାଆନ୍ତା ଶଙ୍କା ॥



## ହିରଣ୍ୟ ସ୍ତୁତି

{ ଜୟ ରଘୁନାଥ ଅରତି ଆରତ ବୃତରେ }

ଜୟ ହଂସାରୂଢ଼ କମଣ୍ଡଳୁ ହସ୍ତ ଜୟ ଜୟ ଜଗତ୍ପିତା । ଜୟ ପଦ୍ମ-ଯୋନି ଜୟ ହେ ବିରଞ୍ଚି ଜୟ ଜୟ ସୃଷ୍ଟିକର୍ତ୍ତା । ଜୟ କୁଶପାଣି

ରକ୍ଷା କର ମୋତେ ପଦ୍ମଯୋନି । ପଦ । ଡାକି ଏଠିକି ମୋର କଣ୍ଠ ରୁଦ୍ଧ ହେଲା ବଚନ ନ କରୁଛ ଦୟା । ଦୟାବନ୍ତ ହୋଇ ଭୁଆରେ ଅଛନ୍ତି କିମ୍ବା କରୁଅଛ ମାୟା । ଦିଅ ଦରଶନ । ଜୟ ଜୟ ମରାଳ-ବାହନ । ୧ । ନ ଶୁଣିବ ଯେବେ ଏ ଅଧମ ଡାକ ଅହେ କମଣ୍ଡଳୁ ହସ୍ତ । ଏ ଜୀବନେ ଆଉ ପ୍ରୟୋଜନ ନାହିଁ ଅନଳେ ହୋଇବି ହତ । ହୃଅ ବାରେ ପ୍ରସନ୍ନ । ଗୀତେ କହେ ହରିନନ୍ଦ ଅଜ୍ଞାନ ।



❋ ବ୍ରହ୍ମାଙ୍କର ହିରଣ୍ୟ ନିକଟକୁ ଗମନ । ❋

{ ଫୁଲ ଫୁଟିଅଛି ନ ନାକାଭ—ବୃତ୍ତେ }

ଧନ୍ୟ ଧନ୍ୟ ହିରଣ୍ୟ ନୃପତି । ତପେ ତୋଷିଲୁ ମୋହର ମତି । ପଦ । ମୁହିଁ ଅଟେ ସର୍ବ ସୃଷ୍ଟିକର୍ତ୍ତା । ମୋର ନାମ ଅଟଇ ବିଧାତା । ତେଣୁ ଆସି ଅଛି ତୋର ଭିତ । ୨ । ଯେତେ ଜପ ଅନୁ-ଲାପ କରି । ତପ କରୁଛନ୍ତି ଦଣ୍ଡଧାରୀ । ଜପ ପଡ଼ନ୍ତୁ ତୋ ଠାରେ ବଳଉ । ୨ । ଯେତେକ କହ ହିରଣ୍ୟ ରାଜନ । ମନ ବାଞ୍ଛା କରିବ ସମ୍ପୂର୍ଣ୍ଣ । ହୀନ ହରିଦର ଏ ଭାରତୀ । ୩ ।



ହିରଣ୍ୟ—ନମସ୍ତେ ନମଃ ମରାଳ ବାହନ !

କର ଯୋଡ଼ି କରୁଅଛି ମୁହିଁ ନିବେଦନ ।
ଯେବେ ଦୟା କରି ଆସିଅଛ ମୋର ପାଶେ ।
ଦୀନ ଜନେ ଦୟା କରି ଦିଅ ଏହି ବର ।
ନ ମରିବି ଜଳେ, ସ୍ଥଳେ, ଶସ୍ତ୍ରେ, ଖର୍ପରେ,
ପ୍ରାତେ କିବା ରାତ୍ର ଅତର୍କ୍ୟେ ନ ହେବ ମୋ ମୃତ୍ୟୁ ।
ଅନଳ ପବନ କିବା ଦେବତାଙ୍କ ହସ୍ତେ;
ନ ମରିବି ମୁହିଁ କଦାଚିତେ ।
ଏତିକି ମାତ୍ର ଜଣାଉଛି କରଯୋଡ଼ି,

ଦୟାକରି ତାରେ ଏ ଅଧମକୁ ।
ଯୁଗେ ଯୁଗେ ବରାଜିବ କୀର୍ତ୍ତିଧ୍ୱଜା ତବ

ବ୍ରହ୍ମା—ତାରୁ ରେ ହିରଣ୍ୟ !

ହେଉ ତୋର ମନୋବାଞ୍ଛା ସିଦ୍ଧି ।
ଯାଅ ତୋତେ ଦେଲି ଅଭୟ ବର
ଅସ୍ତୁ ହେଉ ମୋର ବାକ୍ୟ ଗୋଟି । (ପ୍ରସ୍ଥାନ)

## ❋ ହିରଣ୍ୟ ରାଣୀ ସହ ପ୍ରବେଶ । ❋

( ରାଣୀ ଶୁଣ୍ଣ ଗୋଦ କରି—ବୃତ୍ତରେ )

ତୋଷଚରେତୁ ପ୍ରାଣପତି, କଅ ଏ କୁମ୍ଭ କୁମର । ବାପା ବାପା ବୋଲି ରଡ଼ି ଛଡ଼ୁଅଛି ବାରମ୍ବାର । ପଦ । ଏହୁ ଥିଲା ଗର୍ଭବାସେ ତୁମ୍ଭେ ଗଲ ତପ ଆଶେ । ଦିନେ ପଥରେ କ୍ରୋଧିଲ ଶଚୀପତି ଦୁର୍ବାର । ୧ । ଚରିବ ତୋଳି ଉଦର । ବୃଥା ଘେନିଲ ହସ୍ତର । ଜାନୁ କାନ୍ଦ ଡାକିଲି ମୁଁ କେ ଅଛ ହେ ରକ୍ଷାକର । ଏ ସମୟେ ଋଷିସୁତ, ଆସି ହେଲେ ଉପସ୍ଥିତ । ନାନା କଥାରେ ବୁଝାଇ କରିଲେ ମୋତେ ଉଦ୍ଧାର । ୨ । ଆଶା ନ ଥିଲା ମୋହର, ପୂଜିବ ତବ ପୟର । ଏ ରସେ ବିନୋଦ କହେ ଧ୍ୟାଇ କମଳାର ବର । ୩ ।



ରାଣୀ—ପ୍ରାଣେଶ୍ୱର !

ଶୁଣ କର୍ଣ୍ଣଦେଇ ଦୁଃଖର କାହାଣୀ ।
ଏ କୁମର ଗର୍ଭେ ଥିଲାବେଳେ,
ଯାଉଥିଲି ମୁହିଁ ଦିନେ ଏକୁଟିଆ ।
ଏ ସମୟେ ଶଚୀନାୟକ,
ବଳେ କଳେ ଧରିଲା ସେ ମୋତେ ।
ଦଣ୍ଡେ ବୁଝାଇଲି ତାକୁ,

ନ ମାନିଲା ମୋହର ବଚନ ।
ଚରିବାକୁ ଉଦ୍ୟତ ହେଉଥିଲା ମୋ ଉଦର ।
ଅକୁଲେ କରନ୍ତେ ରୋଦନ ।
ଯାଉଥିଲେ ଶୂନ୍ୟପଥେ ନାରଦ ମହର୍ଷି
ଦୈତ୍ୟକରୁ କରିଲେ ଉଦ୍ଧାର ।
ଦଶମାସ ଦଶଦିନ ପୂର୍ଣ୍ଣ ହେଲା ଯହୁଁ,
ଚନ୍ଦ୍ରବଦନ ପୁତ୍ର ଜାତ ହେଲା ମୋର ଗର୍ଭୁ ।
ଦେଖି ଆନନ୍ଦ ହୋଇ ମନ୍ତ୍ରୀଗଣ,
ବିଧିମତେ ସବୁ କାର୍ଯ୍ୟ କରିଲେ ବିବାହ ।
ଜ୍ୟୋତିଷ ଡକାଇ କଲେ ନାମକରଣ,
ଆହ୍ଲାଦ ହୋଇ ପ୍ରହ୍ଲାଦ ନାମ ଦେଲେ ତାର ।
ହେଲାଣି ପୁତ୍ରକୁ ଆସି ପଞ୍ଚମ ବରଷ;
ପଢ଼ିବାନ୍ତୁ ଏହାକୁ ବିଦ୍ୟା ଡକାଇ ବିଦ୍ୟାଗୁରୁ ।

❋ ବିଦ୍ୟାଗୁରୁଙ୍କ ପ୍ରବେଶ ❋

{ ଭ୍ରବଗ୍ରାହୀ ମନେ ଭକ୍ତ କାହିଁକି—ଚୁତ୍ରେ }

କାହିଁକି ଡାକିଲ ମୋତେ ରାଜନ । ଦଉଡ଼ ଦଉଡ଼ ଚାଲି ଶୁଖି-ଲାଣି ଦେବକି ହେ ବିଦ୍ୟାଗୁରୁଙ୍କୁ ଧନ । ପଦ । ନଈରଚି ଅଗ୍ରି, ସବୁ ସାରିଦେଲା । ସଡ଼ିଗଲା ମୋର ବାଡ଼ିଏ ଧାନ । ୧ । ଭାର୍ଯ୍ୟା ମୋହର, ସ୍ୱର୍ଗଅପସରୀ, ପିନ୍ଧିଅଛୁ ଖଣ୍ଡେ ଛିଣ୍ଡା ବସନ । ୨ । ପିଲା ପିଲି ମୋର, ଉଣେଇଶେ ଏକ । ଧର୍ମ୍ମଛତ୍ର ଏକେ ଏକ ଯେସନ । ନାମ କହିବାକୁ, ଓଳିଏ ଲାଗିବ । ଉପାସେ ମରନ୍ତି ନ ମିଳେ ଅନ୍ନ ॥ କହଇ ହମିଦ, ହୋଇଣ ଆନନ୍ଦ । ଯଦି ଛୁ ମୁଁ ଦିଅ ଦସନ ଦାନ ।

ରାଜା—ବିଦ୍ୟାଗୁରୁ !

କର୍ଣ୍ଣ ଡେରି ଶୁଣ ମୋହର ବଚନ ।
ଏକଇର ବଳା ମୋର ଅଟେ ପ୍ରହଲାଦ୍

ଅର୍ଦ୍ଧାଙ୍ଗରେ ତବ କରେ କଲି ସମର୍ପଣ ।
ପାଠ ପଢ଼ାଅ ଏହାକୁ ଅତି ଯତ୍ନକରି ;
ହେଳା ନ କରିବ ଛଳେ ।
ଦେବ ମୁହିଁ ଯେତେ ଇଚ୍ଛା ଦାନ । ( ପ୍ରସ୍ଥାନ )



{ ପ୍ରହ୍ଲାଦର ବିଦ୍ୟା ଆରମ୍ଭ }

ଗୁରୁ — ଶ୍ରୀ କାଷ୍ଠ ପିଢ଼ରେ ଧୂଳି ମାରି ରେ କୁମର !
ପ୍ରହ୍ଲାଦ — ଦୟାନିଧି କହ ଗୁରୁ ଭେଦ ଏ ବର୍ଣ୍ଣର ?
ଗୁରୁ — ଶ୍ରୀ ଯେ ଅଟନ୍ତି ବିଦ୍ୟାଦାତା ସରସ୍ୱତୀ ।
ପ୍ରହ୍ଲାଦ — ଏହା ପରେ କ ଲେଖିବି ! କୁହ ମହାମତି ?
ଗୁରୁ — ଏହାପରେ ଲେଖ ବ୍ରହ୍ମା ବିଷ୍ଣୁ ସଦାଶିବ ।
ପ୍ରହ୍ଲାଦ — ଏ ତିନଙ୍କ ମଧ୍ୟେ ବଡ଼ ଅଟନ୍ତି କେ ଦେବ ?,
ଗୁରୁ — ବଡ଼ ଅଟନ୍ତି ଶ୍ରୀହରି ତ୍ରିଭୁବନେ ସାର ।
ପ୍ରହ୍ଲାଦ — ତରନ୍ତି କି ନରେ ପାଦ ପୂଜି ଏହାଙ୍କର ?
ଗୁରୁ — ଏହାପରେ ପଢ଼ ବାବୁ ଅ ଆ ଅାଦି ପାଠ ।
ପ୍ରହ୍ଲାଦ — ନ ପଢ଼ିବି ଗୁରୁ ଆଉ ଏତିକି ଯଥେଷ୍ଟ ।



ଗୁରୁପ୍ରତି ପ୍ରହ୍ଲାଦର ଗୀତ ।

{ ଶୁଣ ଲୋ ସୁନ୍ଦରି ଏ ତୋର — ବୃତ୍ତେ }

ନ ପଢ଼ିବି ବିଦ୍ୟା ଅହେ ବିଦ୍ୟାଗୁରୁ ବିଷ୍ଣୁଙ୍କର ନାମ ସାର । ଅପାର ସଂସାରେ କାର୍ଯ୍ୟ ନାହିଁ ମୋର ବିଷ୍ଣୁ ଦୟାର ସାଗର । ତାଙ୍କୁ ଆଶ୍ରୟ ନେଲି । ଭବ ଭୟରୁ ତରିବି ବୋଲି । ୧ । ଯେ ମୋତେ ତାରନ୍ତି ମାରିଲେ ମାରନ୍ତି ତାଙ୍କ ନାମ ଜପାମାଳି । ବନମାଳୀ ମୋର ପିଣ୍ଡର କାରଣ ମାତା ପିତା ଠାରୁ ବଳି । ତାଙ୍କୁ

କରନ୍ତି ସାର । ନାନା ବିପଦୁଁ କରିବେ ପାର । ୨ । ବିଦ୍ୟାଗୁରୁ ମୁହିଁ ତୁମ୍ଭର କୃପାରୁ ଲଭିଅଛୁ ହରିପାଦ । କାଳେ ୨ ତୃଣ ସୂଚି ନ ପାରିବ ଦିଅ ମୋତେ ଅଶୀର୍ବାଦ । ଗୀତେ କହେ ହରିନାଦ । ରକ୍ଷା କରନ୍ତୁ ସଦା ଗୋବିନ୍ଦ । ୩ ।



ଗୁରୁ — କି କହିଲୁ ବତ୍ସ ପ୍ରହ୍ଲାଦ ;

ବାତୁଳ କି ହେଲୁ ତୋର ମତି । ଶିବ ନାମ ଘୋଷ ବାର ମ୍ବାର । ବିଷ୍ଣୁ ଅଟେ ତୋର ପିତୃଶତ୍ରୁ । ସେ ନାମ ନ ଧର ତୁଣ୍ଡେ ଆଉ । ଏହା ଯେବେ ଶୁଣି ପାରିବ ସେ ଦୈତ୍ୟପତି, କ୍ରୁଦ୍ଧ ପରାକ୍ରମେ ହେବ ଏହିକ୍ଷଣି । ଖଡ୍ଗେ ତୋର କରିବ ଶିର-ଚ୍ଛେଦନ । ବାରମ୍ବାର ବାରଣ କରୁଛି ତୋତେ ! ନ ମାନି କପଟ ଧରୁ ବିଷ୍ଣୁ ନାମ ?

✽ ପ୍ରହ୍ଲାଦର ପିତା ପାଖେ ଗମନ ✽

{ କହ ରେ ଅଙ୍କ ର — ବୃତ୍ତେ }

ଆସ ରେ ପ୍ରହ୍ଲାଦ, ତୋତେ ବସ ମୋ ଅଗ୍ରତେ ରେ । କେତେଦିନ ହେଲୁ ଦେଖି ନଥିଲି ମୁଁ ତୋତେ ରେ । ଏବା ହେଲା ଅନେକ ଦିବସ, ଗୁରୁ ଗୃହେ କଲୁ ବାସ । କି ବିଦ୍ୟା କଲୁ ଅଭ୍ୟାସ କହ ମୋ ଅଗ୍ର-ତରେ । ୧। ସକଳ ଶାସ୍ତ୍ରେ ପଣ୍ଡିତ, ହୋଇ ଯଶ ରଖ ସୁତ । ବିଦ୍ୟାବନ୍ତ ସୁତଟୋକି ମାନଙ୍କେ ସମସ୍ତେ ରେ ।। ରାଜନୀତି ଦଣ୍ଡନୀତି, ସାଧନେ ବଳାଅ ମତି । ଯିତ ଭଲେ ରଖ ଖ୍ୟାତି ହରିଦ କହେ ଗୀତେ ରେ ।



ପ୍ରହ୍ଲାଦ—ପିତା !

ଶୁଣ ମୋ ଉତ୍ତର କର୍ଣ୍ଣ ଦେଇ ।

ଗୁରୁ ଗୃହେ ରହି ଯାହା କରିଛୁ ଅଭ୍ୟାସ,

ସମସ୍ତ ପାଠରୁ ସାର ଶ୍ରେଷ୍ଠପାଠ ସେହୁ ।
ସେ ପାଠର ମହିମା ବ୍ରହ୍ମା ଶିବେ ଅଗୋଚର ।
ବୃଥା ପରିଶ୍ରମେ ପଢି ପଢି,
ବୁଡ଼ିଲି ହସ୍ତଗଡ ଘଷି ଘଷି ।
ଶିଖିଛୁ କେବଳ "ବିଷ୍ଣୁ" ବୋଲି ଦୁଇଟି ଅକ୍ଷର ।

—※—

{ ମୂଢ ସଂସାରୁ ଗଲ—ବୃତ୍ତେ }

ପ୍ରହ୍ଲାଦରେ, ଏକେ ତୋହର ଛାତି । ଶିବ ନାମ ଛାଡ଼ି ବିଷ୍ଣୁ ଭଜୁଅଛୁ କାରଣ କି ତୋର ହୋଇଲା ମତି । ପଦ । ହେଉ ବିଷ୍ଣୁ ମୋର ଭଇକି; ମାଇଲି ପାତାଳେ ନେଇକି । ବିଷ୍ଣୁ ନାମ ଗୋଟି ମୁଖରେ ଗାଉଛୁ କୁଳାଙ୍ଗାର ତୋର ଟରିବ ଛାତି । ୧ । ଯେବେ ଯାଅ ଏହାକୁ ଦୂତେ, ଦୟା ନ କରିବ କହୁଛେ । ଟଙ୍କା ସୁନା ଧାନ ଦେବି ମୁଁ ଅନେକ ମୁଣ୍ଡ ହାଣି ଅଣ ମୋହର କତି । ୨ । କୁଳବୁଡା ଅଟଇ ସେହୁ, ତା ମୁଖ ନ ଚାହିଁବି ମୁହିଁ । ହମିଦ କହଇ ତଳେ ଦୟା ନାହିଁ ତାରନ୍ତୁ ବୈକୁଣ୍ଠ କମଳାପତି । ୩ ।



{ ଦୋଷ ନ ଧରିବୁ—ବୃତ୍ତେ }

ମାତ ଜନନୀ ଗୋ ! ଦଅ ଦଅ ମୋତେ ମେଲାଣି । ଅକଟାରୁ ଜାଣ ତୋର ପ୍ରିୟ ପୁତ୍ର ମରିଲାଣି । ପଦ । ପଚାରିଲେ ବିଦ୍ୟା ପିତା, କହିଲି ମୁଁ ଏହି କଥା । ଭବ ସାଗରକୁ ଭେଳା ଅଟେ ଏକା ବଂଶୀପାଣି ।। ବିଷ୍ଣୁ ନାମ ଶୁଣି ତାତ, ହେଲେ କ୍ରୋଧେ ପ୍ରଜ୍ୱଳିତ । ଆଜ୍ଞା ଦେଲେ ଦୂତେ ଡାକ ମୋର ମୁଣ୍ଡ ଦେବେ ହାଣି । ୨ । ବିଦାୟ ହେଉଛୁ ମୁହିଁ; ନ କାନ୍ଦିବୁ ମାତା ତୁହି । ହମିଦ ବୋଲେ ବିପଦ ଦେଲେ ମୋତେ କୁଣ୍ପାଣି । ୩ ।



ବାଣୀ – ହାୟରେ ପ୍ରହ୍ଲାଦ ! ୨

କେତେ ଦୁଃଖ ସହ୍ୟ ବଢ଼ାଇଲି ତୋତେ,
ଏବେ କେଉଁଠି ମୃତ୍ୟୁର ମୁହଁ ।
ପଢ଼ିବାକୁ ଷଣ୍ଡଧର ଯାଉ ଯେତେବେଳେ,
ଉତ୍ତର ଦେଲେ ହୃଦୟ ହୁଅଇ ବଦାର ।
ଫାଟି ଯାଉଛି ହୃଦୟ ଦେଖି ତୋର ମୁଖ,
ଶେଷେ ପୁଣି ଶୁଣିବାକୁ ଥିଲା ପୋଡ଼ା କର୍ମରେ ।



## ✿ ଦୂତଗଣ ଓ ପ୍ରହ୍ଲାଦ ✿

ଦୂତ—କର ଇଷ୍ଟ ଚିନ୍ତା! ଆଉ ବିଳମ୍ବ ନ କର ।
ପ୍ରହ୍ଲାଦ—ସତେ କହୁଅଛେ ମୁଣ୍ଡ ହାଣିବ ମୋହର ?
ଦୂତ—ଛାଡ଼ ବସ୍ତୁ ବୋଲି ଶିବ ରହିବ ପରାଣ ।
ପ୍ରହ୍ଲାଦ—କାଚ ସହିତେ କାଞ୍ଚନ ହେବ କି ସମାନ ?
ଦୂତ—ସମାନ ନୋହିଲା ଯେବେ ହେବ ମୁଣ୍ଡ ହାଣ ।
ପ୍ରହ୍ଲାଦ – ଭିତେ ଭୟ ନାହିଁ ମୋର ଛାର ଏ ପରାଣ ॥
ଦୂତ – ନାହିଁ ଆମ୍ଭ ଦୋଷ ଅଟଇ ରାଜାଙ୍କ ଆଦେଶ ।
ପ୍ରହ୍ଲାଦ – ଇଷ୍ଟ ଅଟନ୍ତି ମୋହର ପ୍ରଭୁ ହୃଷୀକେଶ ।



## ✿ ପ୍ରହ୍ଲାଦର ସ୍ତବ । ✿

{ ଜୟ ଜାନକୀଜୀବନ – ବୃତ୍ତେ }

ଜୟ ଜଗତ, ଜୀବନ ହେ । ଜୟ ଯଶୋଦା କୁମର । ତୁମ୍ଭ ନାମ ଗୋଟି ହୃଦେ ସ୍ମରୁଛି ଏ ବିପଦୁଁ ରକ୍ଷାକର । ପଦ । ପଠାଇଛି ଦୂତ କରିବାକୁ ହତ ଶିର ହାଣିବେ ମୋହର । ଭକ୍ତ ଯେବେ ହତ ହେବ ଲକ୍ଷ୍ମୀକାନ୍ତ ରହିବ ନିନ୍ଦା ତୋହର । ୧ । ପାବନ-ଜନନୀ

ଅପମାନେ ଧ୍ରୁବ ଡାକନ୍ତା ହୋଇ ଅସ୍ଥିର । ପ୍ରସନ୍ନ ହୋଇଣ ତାଙ୍କୁ ରକ୍ଷାକଲ ଜଗ୍ନ ହେ ଦୁଃଖୀ ସୋଦର । ୨ । ଘୋର ଅରଣ୍ୟରେ ମୃଗୁଣୀ ଡାକନ୍ତା ଫେଡ଼ିଲ କଷ୍ଟ ତାହାର । ଏବେ ମୁଁ ତୁମ୍ଭଙ୍କୁ ଅଛା କରଅଛି ହସିବ ଯୋଡ଼ିଇ କର । ୩ ।

— ❋ —

❋ ଗଜ୍ଜ ମାରନ୍ତେ ଖଡ୍ଗ ଭଗ୍ନ ଦେଖି ❋

ରାଜା — ଓଃ ଏ କି ଆଶ୍ଚର୍ଯ୍ୟ !

ଯେତେ ବଳକରି ଅସ୍ତ୍ର ମାରନ୍ତି ହୁତେ;
ଛଳେ ନ ବାଧଇ ତାକୁ ।
ଜାଣିଲି ସାମାନ୍ୟ ନୁହେ ଏ ଶିଶୁ ।
ଏବେ ଚଳଯାଅ ଦୂତଗଣ,
ଡାକଆଣ ହସ୍ତିପାଳକୁ ମୋହର ନକଟେ ।
ମରୁଅ ହସ୍ତି ଦନ୍ତେ ଏ କୁଳାଙ୍ଗାରକୁ ।

( ସେ ଅଜ୍ଞା ପ୍ରସ୍ଥାନ )

— ❋ —

❋ ରାଜା ଓ ମାହୁନ୍ତଙ୍କର କଥୋପକଥନ । ❋

ରାଜା — ହସ୍ତୀ ଦନ୍ତେ ନାଶ ଯାକୁ ଯାଅରେ ମାହୁନ୍ତ ।
ହସ୍ତିପାଳ — କାହିଁକି ନାଶିବି ପଚ୍ଚ ଅଟେ ତୁମ୍ଭ ସୁତ ?
ରାଜା — ପୁତ୍ର ହୋଇ ଶତ୍ରୁ ନାମ ଧରେ ଡାରମ୍ଭାର ।
ହସ୍ତିପାଳ — ଅବଲମ୍ବେ ଦେଖିବ ମୁଁ ପଚ୍ଚଣ ଏହାର ।
ରାଜା — ମାରି ପକାଇଲେ ଟଙ୍କା ସୁନା ଦେବ ତୋତେ ।
ହସ୍ତିପାଳ — ଅପ ସୁତ ଏବେ ମରିବ ହସ୍ତୀଦନ୍ତେ ।



### * ହସ୍ତି ପାଗକୁ ନଅନ୍ତେ ପ୍ରହ୍ଲାଦ ସ୍ତବ *

{ ଘଣୀ ଶୁଣି ତୋହ କାନ୍ତି – ବୃତ୍ତେ }

ବିପଦଭଞ୍ଜନ ପ୍ରଭୁ ! ବିପଦ ଉରଇ ତୋତେ । ତୋ ପଦ ପଙ୍କଜେ ମତି ରହୁ ମେର ଅବିରତେ । ପଦ । ବଢ଼ିଛି ବିପଦନିଧି; ଅନ କୂଳ ପାଉ ନାହିଁ । ବୁଡ଼ି ଯାଉଅଛି ମୁହିଁ, ପାର କରିଦିଅ ମୋତେ । ୧ । ଏବେ ଆଣିଛନ୍ତି ଦୂତେ; ଚଗାଇବେ ହସ୍ତିଦନ୍ତେ । କମଳାରମଣ ପ୍ରଭୁ ରକ୍ଷାକର ବାରେ ମୋତେ । ୨ । ଅନ୍ତର୍ଯ୍ୟାମୀ ତୋହ କାନ୍ତି, କି ବର୍ଣ୍ଣିବ ମୂଢ଼ମତି । ଅବ୍ଦୁଲ ହମିଦ ଧାଉଅଛି ତୋତେ ଅବିରତେ । ୩ ।



{ ମାତ ଦୟ୍ୟାବଲରୁ ତୋହର – ବୃତ୍ତେ }

ସାମାନ୍ୟ ନୁହଇ ଏହୁ ପିଲା । ସବୁ ବୁଦ୍ଧି କୌଶଳ ସରିଲା । ପଦ । ହସ୍ତି ଦନ୍ତେ ଚଗାଇଲ ତାକୁ, ଛଳେ ନ ବାଧିଲା ତା ଦେହକୁ ପୁଣି ଅଗ୍ନି ପାଶେ ଉଭା ହେଲା । ୧ । ନଷ୍ଟେ ଅଟେ ଏହୁ ବସ୍ତୁ ହନ୍ତି, ମୋର ଘରେ ହୋଇଅଛି ଜାତ । କୂଳେ କଳଙ୍କ ମୋର ଲାଗିଲା । ଏବେ ଡାକ ସାପୁଆ କେଳାକୁ । ଅଣ୍ଡ ଦଂଶୁ ତାହାର ଗଳାକୁ । ହମିଦ କପାଳେ ଏହା ଥିଲା । ୩ ।



### * କେଳାର ପ୍ରବେଶ ଗୀତ । *

{ ଲଙ୍କାସୀନଯୃନା – ବୃତ୍ତେ }

କାହିଁ ଯାଉ ରଜା; ଥାଅ ସାପୁଆ କେଳକୁ ଖୋଜା ପଡ଼ିଛି । କେଳୁଣିକି ଏକା ଘରେ ଛାଡ଼ିଦେଇ ଦାଇପାଇଁ ହୋଇ ଧାଇଁ ଆସୁଛି । ପଦ । ଦେବୁ ଯେବେ ଟଙ୍କା କଉଡ଼ି; ଦେବି ଖଣ୍ଡେ ଅମର ଜଡ଼ି । କାଲେ୨ ରଜା କରୁଥିବୁ ମଜା ମନରୁ ନ ଦେବୁ ମୋତେ

ମୂର୍ଚ୍ଛା । ୧ । ( ରାଜା ) ଟଙ୍କା ସୁନା ଦେବି ମୁଁ ତୋତେ; ପର୍ଯ୍ୟା-ପାତେ ମଣ୍ଡେଇ ସ୍ୱତେ । କୁଳାଙ୍ଗାର ପୁତ୍ର ଶତ୍ରୁ ହେଲୁ ମୋର ଶିବ ନାମ ଛାଡ଼ ବତ୍ସ ଭଜୁଛୁ । ୨ । ଯେତେ ଇଚ୍ଛା ଦେବି ମୁଁ ଧନ, ଯେତେବେଳେ ଯ୍ୱାର ଜୀବନ । ଜମିବାଡ଼ି କେତେ ଖଞ୍ଜିଦେବି ତୋତେ ଅବ୍ଦୁଲ ହମିଦ ରସେ ଗାଉଛି । ୩ ।



( ହସ୍ତୀ ଦନ୍ତେ ନ ମରିବାରୁ )

ରାଜା— କି ଆଶ୍ଚର୍ଯ୍ୟ !

ସରିଲା ମୋର ସବୁ ବୁଦ୍ଧିବଳ;
ପାରିଲି ନାହିଁ ଏ ବାଳୁଙ୍ଗା ଟୋକାକୁ ।
ଏବେ ଶୀଘ୍ରେ ଚଳିଯାଅ ଦୂତେ,
ପକାଅ ତାକୁ ଜ୍ୱଳନ୍ତ ଅନଳେ ।
ପୋଡ଼ି ମରୁ ମୂଢ଼;
ନ ମରିବ ଅନଳେ ଯେବେ,
ବିଷ ଖୁଆଇ ନାଶ ତା ଜୀବନ ।
ସେଥିରେ ଯେବେ ନ ମରିବ ସେହି;
ଯଜ୍ଞ ବ୍ରାହ୍ମଣେ ଡକାଇ ପକାଅ ତପ୍ତ ତୈଳେ ।
ଏତେ ଉପାୟରେ ଯେବେ ନ ମରିବ ସେହି ।
ପର୍ବତ ଉପରୁ ତାକୁ କର୍ଷ୍ଣ ଦେଇ ।

( ସେ ଅଞ୍ଜା ପ୍ରସ୍ଥାନ )

❋ ପ୍ରହ୍ଲାଦର ମାତା ନିକଟେ ଗମନ । ❋

{ ମାତ ଖେଳୁଥିଲି ପଥେ—ବୃତ୍ତେ }

ଗର୍ଭଧାରୀ ଦଯ୍ୟାରୁ ତୋହର ଗୋ । ନାନା ଦୁଃଖରୁ ତାରିଲେ ହରି ଗୋ । ପଦ । କେତେ ଉପାୟ ପାଇଲେ ତାତ ଗୋ । ମୋର ପ୍ରାଣ

କରବାକୁ ହତ ଗୋ ।୧। ଦୂତେ ଅସ୍ତ୍ର ମାରଲେ ମୋ ଅଙ୍ଗେ ଗୋ । ଛଳେନ ବାଜ ଭିକଲ୍ପ ବେଗେ ଗୋ ।୨। ଭକ୍ତ ଚିକାଇଲେ ହସ୍ତି-ପାଳ ଯେ । ମଣ୍ଡାଇଲେ ତାର ପାଦତଳେ ଯେ ।୩। ମୋତେ ରକ୍ଷାକଲେ ରଙ୍ଗାଅଧର ଗୋ । ହମିଦ ଯୋଡ଼ିଲ୍ଲ ବେନ-କର ଗୋ ।୪।



ପ୍ରହ୍ଲାଦ — ଅଲ୍ପେ ଟର୍ଗଧାରୀ ମାତ ଦଅ ଭି ମେଲାଣି ।
ରାଣୀ — ପୁଣି କେଣେ ଯିବୁ ଅରେ ମୋର ଗୁଣମଣି ।
ପ୍ରହ୍ଲାଦ — କେଉଛନ୍ତି ଦୂତେ ମୋତେ ପୋଡ଼ିବେ ଅନଳେ ।
ରାଣୀ — ପୁଣି ଶୁଣିବାକୁ ଥିଲା ଏହା ମୋ କପାଳେ ।
ପ୍ରହ୍ଲାଦ — ବ୍ୟସ୍ତ ହୁଅ ନାହିଁ ମାତ ତାରବେ ଅନନ୍ତ ।
ରାଣୀ — ଏକେତ କେତେ ଦୁଃଖପଦ୍ମ ବଢ଼ାଇଲ ସୁତ ।
ପ୍ରହ୍ଲାଦ — ଥିବ ଯେବେ ପ୍ରାଣ ପୁଣି ଆସି ଦେବା ଦେଖା ।
ରାଣୀ — କମଳାରମଣ ପ୍ରଭୁ କରୁ ତୋତେ ରକ୍ଷା ।



{ ଅଙ୍କା ଦଅ ଭେଡରଜ—ବୃତ୍ତେ }

ଅପ ଅପ ରାଜପୁତ୍ର; ରାଜାଙ୍କ ହେଲା ଆଦେଶ । ଅନଳେ ପକାଇ ତୋତେ ନିଷ୍ଠୁ କରିବୁଁ ନାଶ । ପଦ । ସେଥିରେ ବର୍ତ୍ତିବୁ ଯେବେ, ବିଷ ଖୁଆଇବୁଁ ତେବେ । ତପ୍ତ ତଇଲେ ପକାଇ ପଠାଇବୁଁ ଯମ-ପାଶ । ୧ । ଅଭ୍ର ଭାଲଲେ କ ହେବ, ଯାହା ଲେଖିଛି ଦଇବ । ଅନ୍ୟଥା କଏ କରିବ, ଅପରେ ବାଞ୍ଛିତ୍ର ଶିଷ୍ୟ । ୨ । କପାଇଁ କରୁ ଉତ୍ତର, ଏବେ ଇଷ୍ଟ ଚନ୍ଦ୍ରାକର । ଅବ୍ଦୁଲ ହମିଦ କହେ ରକ୍ଷା-କର ହୃଷୀକେଶ । ୩ ।



ଧ୍ୱଣୀ – ଦୂତଗଣ !

ଦୟା କ ନାହିଁ ତବ ହୃଦେ ?
ଅଜ୍ଞାନ ବାଳକ ଗୋଟିକ;
କେତେ କଷ୍ଟ ଦେଉଅଛ ନେଇ।
ନାହିଁ କରେ ବିଚାର୍ଯ୍ୟ ଚଳ,
ଧର୍ମ କ ସହିବ ତୁମ୍ଭଙ୍କୁ।

ମାତଃ !

ନାହିଁ ଆମ୍ଭ ଦୋଷ ଜନେ ମାଏ;
ରାଜାଙ୍କର ଯାହା ଆଜ୍ଞା;
ନଷ୍ଟେ କରିବୁଁ ପାଳନ।
ଅପ୍ରୋଧ କରିବୁଁ ଯେବେ,
ନଷ୍ଟେ ହେବ ଆମ୍ଭ ମୁଣ୍ଡ ହାଣ।

* ଅଗ୍ନିରେ ଦହନ କରନ୍ତେ। *

ପ୍ରହ୍ଲାଦଃ – ପ୍ରଭୁ ହେ ବିପଦଭଞ୍ଜନ !

କେତେ ସହିବ ମୁଁ ଏ ଦୈତ୍ୟର ଦାଉ।
ବାରମ୍ବାର ଗଲୁ ଦୁଃଖ ଦେଉଅଛ ମୂଢ଼।
ଏବେ ମାରୁଅଛି ନାନା ଉପାୟ କରି।
ଛାଡ଼ି ସକଳ ଆଶା ଭରସା,
ସାର କରିଛି ଏକା ତୋ ନାମ ଗୋଟିକ।
ତାରିଲେ ତାରିବୁ ପ୍ରଭୁ ମାରିଲେ ମାରିବୁ।
ପିଣ୍ଡେ ପ୍ରାଣ ଥିବାଯାଏ ନ ଭୁଲିବି ତୋତେ।



* ଏତେ ଉପାୟେ ପ୍ରହ୍ଲାଦର ମୃତ୍ୟୁ ନ ହେବାରୁ *
* ରାଜାର ଗୀତ । *
{ ହେ ମନ୍ତ୍ରୀ ବୁଝ ତା ବୃତ୍ତେ । }

ଅରେ ରେ ନାର୍କିକ ନ ଗଢ଼ିତ ଅଳ୍ପ ଦେଖା ତୋର ହର କାହିଁ । ବାରମ୍ବାର ତାରଂ ନାମ ମୁଖେ ଧରୁ ପଠାଇବ ଯମ ଭୂଇଁ । ବେଗେ ଦେଖା ତୋ ହରି । କେଉଁ ସ୍ଥାନେ ନିବାସ ତ ହାର ॥ କେ ତାହାର ମାତା କେ ତାହାର ପିତା କେ ତାହାର ପୁଅ ଝିଅ । କେଉଁ ବୃତ୍ତିକର ପାଳଇ ଭୁତ୍ୟ ଯେ ସବୁ ଚଳାଇ ଦିଅ । ରୂପ କେମନ୍ତ ତାର । ବେଗେ କହ କହ ବୁଝିବାର । ୨ । ଯାହା ଯାହା ତୋତେ ପଢ଼ିଇଲ ମୁଢ଼ ତାହା କହ ସ୍ପଷ୍ଟ କରି । ନ କହିବୁ ଯେବେ ନଷ୍ଟ ପ୍ରାଣ ନେବ ରଖିବାକୁ ଅଛି ହରି । ଗୀତେ କହେ ହରି ଦାସ । ଏବେ ପଡ଼ିଲୁ ଅଛି ପ୍ରମାଦ । ୩ ।

ପ୍ରହ୍ଲାଦ—ପିତା ! —*—

ଯାହା ୨ ପଢ଼ିଇଲ ମୋତେ;
କହୁଅଛୁ ଶୁଣ ଶ୍ରୁତି ତତ୍ତ୍ୱ ।
ସବୁସ୍ଥାନେ ବିଷ୍ଣୁଙ୍କ ନିବାସ;
ନାହିଁ ତାଙ୍କ ପିତା ମାତା ଅବା ବାତ ବୃତ୍ତି ।
ଅଖିଳ ଜଗତ-ପିତା ଅଟନ୍ତି ସେହି ।
ତାଙ୍କ ନାମର ମହିମା ବ୍ରହ୍ମା ଶିବଙ୍କୁ ଅଗୋଚର ।
କେବଳ ବିଷ୍ଣୁମୟ ଏ ସଂସାର ।
ସକଳ ସ୍ଥାନରେ ରହିଛନ୍ତି ସେ ।
ବିନାଦୋଷେ ବୃଥାରେ ଝିଅଁ ଦେଉଛ କଷ୍ଟ,
ଦେଖ ଏବେ ମୋର ହରି ଶୁକ୍ଳ ତୃଣକାଷ୍ଠ ।
( ପ୍ରମୃତରେ ବର୍ତ୍ତମାନ )

—*—

## ହିରଣ୍ୟ ବିଦାରଣ।

{ ଅଇଲା ଅଇଲା କୃଷ୍ଣ – ବୃନ୍ଦେ। }

ଏକା ଭୟଙ୍କର ରୂପ ଦଶିଲା ଦଶିଲା ରେ। ନୟନ ତରଣି ହୁର ଛଡ଼ିଲା ଛଡ଼ିଲା ରେ। ପଦ। ଦେଖିବାର ତାର ତୁଣ୍ଡ, ଘୂରାଉଛି ଘୋର ମୁଣ୍ଡ। ପିଣ୍ଡରୁ କ ମୋର ପ୍ରାଣ ଛାଡ଼ିଲା ଛାଡ଼ିଲା ରେ। ୧। ଶିହର ପର୍ଯ୍ୟେ କେଶ, ଲମ୍ବିଅଛି କଣ୍ଠଦେଶ। ଶୃଙ୍ଗକରେ ଆପେ ଉଭା ହୋଇଲା ହୋଇଲା ରେ। ୨। ଦଶୁନାହିଁ ବୁଦ୍ଧିବାଟ, ହେଲାକି ରେ ବନ୍ଧୁ କୂଟ। ହମିଦ ହ୍ରୀନର ବୁଦ୍ଧି ହଜିଲା୨ ରେ।

( ହିରଣ୍ୟ ମୃତ୍ୟୁ। )

ଯବନିକା ପତନ।






କଟକ ଓଡ଼ିଶା କୋହିନୂର ପ୍ରେସ୍‌ରେ ଏସ୍. ଅମିନୁଲ ଅଇ, ଙ୍କ ଦ୍ୱାରା
ମୁଦ୍ରିତ। ୧୯୨୯

# ବିଜ୍ଞାପନ ।

ହିନ୍ଦୁ ମହାଶୟେ,

ଆମ୍ଭର ଏହି ପୁସ୍ତକାଳୟରେ ପ୍ରାଚୀନ-ନବ୍ୟ କବିବୃନ୍ଦ ରଚିତ କାବ୍ୟ, ନାଟକ, ଜ୍ୟୋତିଷ, ବୈଦ୍ୟ, ଉପନିଷଦ, ପୁରାଣ, ମହାଭାରତ, ରାମାୟଣ, ଗୀତା, ଛାନ୍ଦଗୀତ, ଭଜନ, କୀର୍ତ୍ତନ, ଚୌପଦୀମାଳି, ପ୍ରଭୃତି ଯାବତୀୟ ଓଡ଼ିଆ ପୁସ୍ତକାଦି ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ଏହାଛଡ଼ା ପାଟ, ମଠା, ତସର, ଚଦର, କୋଟ, କାମିଜ, ଟୋପି ମୋଜା, ଶାଲ, ପାରଜ, ବନାତ, ମଲମଲ ପ୍ରଭୃତି ଯାବତୀୟ ଜିନିଷ ଅନୁକଟରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ଅର୍ଡ଼ର ପଠାଇଲେ ପୁସ୍ତକ ମୂଲ୍ୟର ପାଦ ପାଇବେ

| | | | |
|---|---|---|---|
| ବାଲ୍ମୀକି ରାମାୟଣ ସେଟ | ଟ ୬୲ | ଲକ୍ଷ୍ମୀପୁରାଣ | ଟ ୦ ୶ |
| ବଡ଼ ରାମାୟଣ | ଟ ୧ ୲ | ବିନାଥମେଳା | ଟ ୦ ୵ |
| ବିଲଙ୍କା ରାମାୟଣ | ଟ ୦ ୫୶ | ଅଙ୍ଗଦପଦ | ଟ ୦ ୶ |
| ମହାନାଟକ | ଟ ୧ ୲ | ଭୂତକେଳି | ଟ ୦ ୶ |
| ମଥୁରାମଙ୍ଗଳ | ଟ ୦ ।୵ | ପ୍ରଭାତ ଅବକାଶ | ଟ ୦ ୵ |
| ପ୍ରସ୍ତାବସିନ୍ଧୁ | ଟ ୦ ।୶ | ରାଧାକୃଷ୍ଣ ମିଳନ | ଟ ୦ ୵ |
| ସୁଧାସାରଗୀତା | ଟ ୦ ୫ | ଲାବଣ୍ୟନିଧି | ଟ ୦ ୵ |
| ପଦ୍ମପୁରାଣ | ଟ ୧ ୲ | ଲକ୍ଷ୍ମଣ ଶକ୍ତିଭେଦ | ଟ ୦ ୲୶ |
| ବୈଦେହୀଶ ବିଳାସ ସେଟ | ୧୨ ୩୫ | କାର୍ତ୍ତିକମାହାତ୍ମ୍ୟ | ଟ ୦ ୫ |
| ଭାଗବତ ୧ ସେଟକୁ | ଟ ୪ ୲ | ଗଙ୍ଗାମାହାତ୍ମ୍ୟ | ଟ ୦ ।୵ |
| ବିଦଗ୍ଧ ଚିନ୍ତାମଣି | ଟ ୨ ୲ | ଦୈବକଦାବାନଳ | ଟ ୦ । |
| ଲାବଣ୍ୟବତୀ | ଟ ୧ ୲ | ଉଦାହରଣ ଶ୍ଳୋକମାଳା | ଟ ୦ ୶ |

ଦାଶରଥି ପୁସ୍ତକାଳୟ
ବାଲୁବଜାର କଟକ,
ପୋଃ ଅଃ ଚାନ୍ଦନୀଚୌକ ।

ଶ୍ରୀ ଦାଶରଥି ଦାସ ।
ପ୍ରୋପ୍ରାଇଟର